ଭାରତର ମହାନ୍ ବୈଜ୍ଞାନିକ

# ଜେ.ବି.ଏସ୍. ହାଲଡେନ୍

ଅନୁବାଦ:

କାହ୍ନୁ ଚରଣ ମହାକୁଡ଼

ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା



ଭାରତର ମହାନ୍ ବୈଜ୍ଞାନିକ

# ଜେ.ବି.ଏସ୍. ହାଲଡେନ୍






ଭାରତ ଜ୍ଞାନବିଜ୍ଞାନ ସମିତି, ଓଡ଼ିଶା
ସି-୧୨୪(ଏଚ୍.ଆଇ.ଜି.), ହାଉସିଂ ବୋର୍ଡ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩,
ଫୋନ-୦୬୭୪-୨୩୫୫୮୯୧ ।

| | |
|---|---|
| ବହିର ନାମ | ଭାରତର ମହାନ ବୈଜ୍ଞାନିକ<br>**ଜେ.ବି.ଏସ୍. ହାଲଡେନ୍** |
| ଅନୁବାଦ | କାହ୍ନୁଚରଣ ମହାକୁଡ |
| ପ୍ରଥମ ପ୍ରକାଶନ | ୨୦୧୫ |
| ପ୍ରକାଶକ ଓ ସତ୍ତ୍ୱାଧିକାରୀ | ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା<br>ସି-୧୨୪(ଏଚ୍.ଆଇ.ଜି.),<br>ହାଉସିଂ ବୋର୍ଡ କଲୋନୀ,<br>ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩<br>ଫୋନ-୦୬୭୪-୨୩୫୫୮୯୧ |
| ମୁଦ୍ରଣ | ବିଶ୍ୱରୂପା, ଭୁବନେଶ୍ୱର |
| ଅକ୍ଷର ସଜ୍ଜା | ସାରଦା କୁମାର ସାହୁ |
| ମୂଲ୍ୟ | ଟ. ୧୫.୦୦ମାତ୍ର |

| | |
|---|---|
| Book Name : | **J.B.S. HALDEN** |
| Transleted by: | Kanhu Charan Mahakud |
| Published by : | Bharat Gyan Vigyan Samiti, Odisha<br>C-124, (HIG) Housing Board Colony,<br>Baramunda, Bhubaneswar-751003,<br>Ph.: 0674-2355891 |
| Edition | 2015 |
| Pinted at | Biswarupa, Bhubaneswar |
| Price | Rs. 15.00 |

ଏହି ପୁସ୍ତିକାଟି ପିଲାମାନଙ୍କର **ପଠନ ଅଭ୍ୟାସ ବୃଦ୍ଧି ଅଭିଯାନ** (Campaign for Promotion of Reading Habits)ପାଇଁ ପ୍ରସ୍ତୁତ କରାଯାଇଛି । ଓଡ଼ିଶାର ପିଲାମାନଙ୍କ ପଠନ ରୁଚି ବଢାଇବା ସହ ପାଠାଗାର ଆନ୍ଦୋଳନ ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ମହତ ଉଦ୍ୟମ ।



# ଜେ.ବି.ଏସ୍. ହାଲଡେନ୍

ଇଂରେଜମାନେ ଏକ ଲମ୍ବା ସମୟ ଧରି ଭାରତରେ ଶାସନ କଲେ । ବିଦେଶୀ ଶାସକମାନେ ଆମ ଦେଶର ସମ୍ବିଧାନ ସଂଶୋଧନର ଖୁବ୍ ବିରୋଧ କଲେ । କିନ୍ତୁ ସେଇ ବିଦେଶୀମାନଙ୍କ ମଧ୍ୟରେ ଏଭଳି କେତେ ଜଣ ମଧ୍ୟ ଥିଲେ ଯେଉଁମାନେ ଏହି ଦେଶର ପ୍ରେମରେ ପଡିଗଲେ । ସେମାନେ ଏଇ ଦେଶର ଏଭଳି ସେବା କଲେ ଯେ ଆମେ କଳ୍ପନା ମଧ୍ୟ କରି ପାରିବା ନାହିଁ । ଏହିଭଳି ଏକ ନାମ ହେଉଛି ଜେ.ବି.ଏସ୍. ହାଲଡେନ୍ । ପୂରା ନାମ ଜନ୍ ବର୍ଣ୍ଣାଡ୍ ସେଣ୍ଡରସନ୍ ହାଲଡେନ୍ । ସ୍ୱଦେଶ ଶାସକ ଅର୍ଥାତ୍ ବ୍ରିଟିଶ ସରକାରଙ୍କ ସହିତ ସୈଦ୍ଧାନ୍ତିକ ବିରୋଧ ଯୋଗୁଁ ସେ ନିଜ ଦେଶ ଛାଡି ଭାରତ ଚାଲି ଆସିଥିଲେ । ସେ ଗାନ୍ଧିଜୀଙ୍କ ଦ୍ୱାରା ଅଧିକ ମାତ୍ରାରେ ପ୍ରଭାବିତ ହୋଇଥିଲେ । କିନ୍ତୁ ବିଡମ୍ବନା ଏହି ଯେ, ଆମ ଦେଶରେ ମଧ୍ୟ ବହୁତ କମ୍ ଲୋକ ତାଙ୍କ ନାମ ଓ କାର୍ଯ୍ୟ ସହିତ ପରିଚିତ ।



ହାଲଡେନ୍ ଏଭଳି ଏକ ପରିବାରରୁ ଆସିଥିଲେ, ଯେଉଁ ପରିବାର ଦୁଇ ତିନୋଟି ପିଢି ବିଜ୍ଞାନ କ୍ଷେତ୍ରରେ ବିଶେଷ ଯୋଗଦାନ ଦେଇ ଆସିଥିଲେ । ସ୍ୱୟଂ ହାଲଡେନ୍ ମଧ୍ୟ ବିଭିନ୍ନ ଗବେଷଣା କ୍ଷେତ୍ର, ବୈଜ୍ଞାନିକ ବିଚାର, ବିଜ୍ଞାନର ଲୋକାଭିମୁଖୀକରଣ କରିବାରେ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି ।

୧୮୯୨ ମସିହାରେ ଅକ୍ସଫୋର୍ଡଠାରେ ଜନ୍ମିତ ଜେ.ବି.ଏସ୍. ହାଲଡେନ୍ ଇଟନ ଏବଂ ଅକ୍ସଫୋର୍ଡ ଠାରେ ତାଙ୍କର ଶିକ୍ଷା ସମାପ୍ତ କରିଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ବେଳେ ସେ ସୈନ୍ୟ ବିଭାଗରେ ଚାକିରି କରିଥିଲେ । ୧୯୧୯ ମସିହାରେ ସେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳରେ ଅଧ୍ୟାପକ ନିଯୁକ୍ତ ହେଲେ । ୧୯୨୨ ମସିହାରେ ତାଙ୍କୁ କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ରିଡର ନିଯୁକ୍ତ କରାଗଲା ।

୧୯୩୨ ମସିହାରେ ହାଲଡେନ କାଲିଫର୍ଣ୍ଣିଆ ଠାରେ ଜଣେ ଅତିଥି ପ୍ରଧ୍ୟାପକ ଭାବରେ ନିଯୁକ୍ତ ପାଇଲେ । ୧୯୩୩ ମସିହାରେ ସେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଜେନେଟିକ୍ସ ଏବଂ ପୁଣି ୧୯୩୭ ମସିହାରେ ସେ ୟୁନିଭର୍ସିଟି କଲେଜ, ଲଣ୍ଡନଠାରେ ବାୟୋମେଟ୍ରିର ପ୍ରଫେସର ନିଯୁକ୍ତ ହେଲେ । ନିଜର ଅଧ୍ୟାପକ

ଏବଂ ଗବେଷଣା କାର୍ଯ୍ୟ ସଂଗେ ସଂଗେ ନିୟମିତ ଭାବରେ ବିଭିନ୍ନ ପତ୍ରପତ୍ରିକାରେ ଲେଖା ଲେଖି ମଧ୍ୟ କରୁଥିଲେ । ସେ ମଧ୍ୟରୁ ଅନେକ ଲେଖା ଅତ୍ୟନ୍ତ ଲୋକପ୍ରିୟ ହୋଇ ପାରିଥିଲା । ତାଙ୍କର କେତେଖଣ୍ଡ ପୁସ୍ତକ ମଧ୍ୟ ପ୍ରକାଶିତ ହୋଇଥିଲା । ସେ ଯେପରି ବିଶେଷଜ୍ଞ ବୈଜ୍ଞାନିକଙ୍କ ପାଇଁ ଲେଖୁଥିଲେ ସେହିପରି ଅତି ସାଧାରଣ ଲୋକଙ୍କ ପାଇଁ ମଧ୍ୟ ଲେଖୁଥିଲେ ଯଦ୍ଦ୍ୱାରା ବିଜ୍ଞାନର ଅଧିକ ପ୍ରଚାର ପ୍ରସାର ହୋଇପାରିଥିଲା । ଏହା ଫଳରେ ଜନସାଧାରଣଙ୍କ ବୈଜ୍ଞାନିକ ଦୃଷ୍ଟିକୋଣ ମଧ୍ୟ ସ୍ପଷ୍ଟ ହେବାକୁ ଲାଗିଲା । ହାଲଡେନ ସହଜ ଓ ସରଳ ଭାଷାରେ ପିଲାମାନଙ୍କ ପାଇଁ ମଧ୍ୟ ବୈଜ୍ଞାନିକ ଲେଖାମାନ ଲେଖିଲେ ଏବଂ ତାହା ପିଲାଙ୍କ ଦ୍ୱାରା ମଧ୍ୟ ଲୋକପ୍ରିୟ ହେଲା । ସେ ଜଣେ ମହାନ୍ ବୁଦ୍ଧିଜୀବୀ, ପ୍ରଖର ବିଚାରକ, ପ୍ରସିଦ୍ଧ ବୈଜ୍ଞାନିକ ଏବଂ ଲେଖକ କେବଳ ନଥିଲେ, ସେ ନିଜ ସିଦ୍ଧାନ୍ତରେ ଅଟଳ ରହୁଥିବା ଜଣେ ଆଗୁଆ ମଣିଷ ଥିଲେ । ନିଜ ସିଦ୍ଧାନ୍ତର ସୁରକ୍ଷା ପାଇଁ ତାଙ୍କୁ ନିଜର ପ୍ରଥମ ପତ୍ନୀଙ୍କ ସହ ଦାମ୍ପତ୍ୟ ଜୀବନ ଛିନ୍ନ କରିବାକୁ ହେଲା ।



ହାଲଡେନ୍‌ଙ୍କର ଦୃଢ ମତ ରହିଥିଲା ଯେ, ଯଦି ସରକାର ନିଜେ ତିଆରି କରିଥିବା ନିୟମଗୁଡିକର ଉଲଂଘନ କରୁଛି, ତେବେ ଦେଶର ସଚ୍ଚୋଟ ନାଗରିକମାନେ ତାହା ବିରୁଦ୍ଧରେ ବିଦ୍ରୋହ କରିବା ଉଚିତ୍ । ଏହି ମର୍ମରେ ସେ ନିଜେ ଅନେକ ଥର ବ୍ରିଟିଶ ସରକାରଙ୍କର କେତେକ ନୀତି ନିୟମକୁ ଦୃଢ ସ୍ୱରରେ ବିରୋଧ କରିଥିଲେ । ସେ କେବଳ ଗବେଷଣା ଗାରରେ ରହି ଗବେଷଣାରେ ମଗ୍ନ ଥିବା ଜଣେ ସାଧାରଣ ବୈଜ୍ଞାନିକ ନଥିଲେ ।




୧୯୫୬ ମସିହାରେ ସୁଏଜ୍ କେନାଲ ପ୍ରସଂଗକୁ ନେଇ ବ୍ରିଟେନ ମିଶର ଉପରେ ଆକ୍ରମଣ କଲା । ଏଥି ସହିତ ଆମେରିକାକୁ ପରମାଣୁ ଅସ୍ତ୍ରର ସଂରକ୍ଷଣ ପାଇଁ ନିଜ ଦେଶରେ ସ୍ଥାନ ଓ ଅନୁମତି ପ୍ରଦାନ କଲା । ହାଲଡେନ ସରକାରଙ୍କର ଏହି ନୀତି ଏବଂ ନିଷ୍ପତ୍ତିର ଦୃଢ ବିରୋଧ କରିଥିଲେ । ସେ କେବଳ ଏହାର ତୀବ୍ର ସମାଲୋଚନା କରି ନଥିଲେ ପରନ୍ତୁ ବିରୋଧ ସ୍ୱରୂପ ସେ ନିଜ ଦେଶକୁ ମଧ୍ୟ ପରିତ୍ୟାଗ କଲେ । ୧୯୫୭ ମସିହାରେ ସେ ବ୍ରିଟେନ ଛାଡି ଭାରତକୁ ଚାଲି ଆସିଲେ । ଭାରତରେ ତାଙ୍କୁ ସହର୍ଷେ ସ୍ୱାଗତ କରାଗଲା । ଭାରତ ଆସି ମଧ୍ୟ ସେ ତାଙ୍କର ବୈଜ୍ଞାନିକ ବିଚାର ଓ ଗବେଷଣାରେ ଲାଗି ରହିଲେ । ୧୯୬୧ ମସିହା ପର୍ଯ୍ୟନ୍ତ ସେ 'ଷ୍ଟାଟିଷ୍ଟିକାଲ ଇନ୍‌ଷ୍ଟିଚ୍ୟୁଟ' ରେ ପ୍ରଫେସର ଭାବେ କାର୍ଯ୍ୟ କଲେ । ୧୯୬୨ ମସିହାରୁ ୧୯୬୪ ମସିହା ପର୍ଯ୍ୟନ୍ତ ସେ ଭୁବନେଶ୍ୱର ସ୍ଥିତ ଜେନେଟିକ୍ସ ଏବଂ ବାୟୋମେଟ୍ରି ପ୍ରୟୋଗଶାଳାରେ ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କରିଥିଲେ । ଇତି ମଧ୍ୟରେ ସେ ଭାରତର ନାଗରିକତ୍ୱ ମଧ୍ୟ ଗ୍ରହଣ କରି ସାରିଥିଲେ ।



ପ୍ରଫେସର ହାଲଡେନ୍ ଜଣେ ଜୀବବିଜ୍ଞାନୀ ଥିଲେ । କିନ୍ତୁ ତାଙ୍କର କାର୍ଯ୍ୟକ୍ଷେତ୍ର କେବଳ ସେତିକିରେ ସୀମିତ ନଥିଲା । ସେ ଗଣିତ ଠାରୁ ଆରମ୍ଭ କରି ଔଷଧୀୟ ଶାସ୍ତ୍ର ପର୍ଯ୍ୟନ୍ତ ବିବିଧ କ୍ଷେତ୍ରରେ ଅନେକ ମୌଳିକ କାର୍ଯ୍ୟ କରିଛନ୍ତି । ସେଥି ମଧ୍ୟରୁ ଡାରଓ୍ୱିନଙ୍କ ବିବର୍ତ୍ତନବାଦର ଐତିହାସିକ ତତ୍ତ୍ୱକୁ ଜୈବ ସଂଖ୍ୟିକୀୟର ଅକାଟ୍ୟ ପ୍ରମାଣ ସହ ଆହୁରି ସୁଦୃଢ଼ କରିବା ଅନ୍ୟତମ । ତାଙ୍କର ଏହି କାର୍ଯ୍ୟକୁ ଅତ୍ୟନ୍ତ ସମ୍ମାନର ସହିତ ଦେଖାଯାଇଥାଏ ।

ଜୀବ ବିଜ୍ଞାନରେ 'ଜେନେଟିକ୍ସ' ବ୍ୟତୀତ ଏହାର ଅନ୍ୟାନ୍ୟ ବିଭାଗରେ ମଧ୍ୟ ପ୍ରଫେସର ହାଲଡେନଙ୍କ କାର୍ଯ୍ୟ ଉଲ୍ଲେଖନୀୟ ଅଟେ । ସେ ଔଷଧ, ରକ୍ତ, ଜୈବ ରସାୟନ ବ୍ୟତୀତ ଗଣିତ ଏବଂ ବିଶ୍ୱବ୍ରହ୍ମାଣ୍ଡର ଗବେଷଣା କ୍ଷେତ୍ରରେ ମଧ୍ୟ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି ।

ସେ ଏଭଳି ଜଣେ ମୌଳିକ ଗବେଷକ ଥିଲେ ଯେ ନିଜ ଦ୍ୱାରା ଆବିଷ୍କୃତ ଔଷଧକୁ ସେ ନିଜ ଦେହରେ ହିଁ ପ୍ରଥମେ ପ୍ରୟୋଗ ଓ ପରୀକ୍ଷା କରୁଥିଲେ । ଏଭଳି ଦୁଃସାହସିକ ପ୍ରୟୋଗ କରୁ କରୁ ସେ ଥରେ ଦୁଇଥର ଅଳ୍ପକେ ମୃତ୍ୟୁ

ମୁଖରୁ ବର୍ଣ୍ଣି ଯାଇଛନ୍ତି । ଭାରତର ସଂସ୍କୃତି ଏବଂ ଦର୍ଶନ ପ୍ରତି ତାଙ୍କର ଗଭୀର ରୁଚି ଥିଲା । ଜୈନ ଧର୍ମର ସମାଜବାଦ ଦ୍ୱାରା ସେ ଏତେ ମାତ୍ରାରେ ପ୍ରଭାବିତ ହୋଇଥିଲେ ଯେ, 'ଦି ସମାଜବାଦ ସିଷ୍ଟମ ଅଫ୍ ପ୍ରଡକ୍ସନ' ଶୀର୍ଷକ ମହତ୍ତ୍ୱପୂର୍ଣ୍ଣ ଲେଖାଟିଏ ମଧ୍ୟ ଲେଖିଥିଲେ । ସେ ଭାରତକୁ ଆସିବା ପରେ ଅନେକ ଲୋକ ତାଙ୍କ ସହିତ ବିଭିନ୍ନ ପ୍ରସଂଗରେ ବିଚାର ବିମର୍ଷ କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ବିଶେଷ କରି ବିଜ୍ଞାନକୁ କିପରି ଅଧିକ ଲୋକପ୍ରିୟ କରାଯାଇ ପାରିବ, ସେଇ ପ୍ରସଂଗରେ ପ୍ରଫେସର ହାଲଡେନ୍ କହୁଥିଲେ ଯେ, ସରଳରୁ ଅତି ସରଳତମ ଭାଷାରେ ବିଜ୍ଞାନର ଜଟିଳ ପ୍ରସଂଗଗୁଡିକ ଲୋକଙ୍କ ପାଖକୁ ପହଂଚାଇବା ନିମନ୍ତେ ପ୍ରୟାସ ହେବା ଉଚିତ୍ । ସେ ବିଶ୍ୱାସ କରୁଥିଲେ ଯେ, ଗୁଢ ବୈଜ୍ଞାନିକ ବିଷୟ ଉପରେ ଗବେଷକମାନଙ୍କ ପାଇଁ ଭାଷଣ ଦେବା ଅଥବା ଲେଖାଟିଏ ଲେଖିବା ସରଳ । କିନ୍ତୁ ଆମର ନିତ୍ୟନୈମିତ୍ତିକ ଜୀବନରେ ଘଟୁଥିବା ଘଟଣାବଳୀ ସହିତ ବିଜ୍ଞାନକୁ କିପରି ସାମିଲ କରାଯାଇ ପାରିବ ଏକଥା କହିବା ଏକ କଠିନ କାମ । ସୁତରାଂ ବିଜ୍ଞାନକୁ ଲୋକଙ୍କ ଭାଷାରେ ହିଁ ଲୋକଙ୍କ ପାଖରେ ପହଂଚାଇବା ପାଇଁ ପ୍ରଯତ୍ନ କରାଯିବା ଉଚିତ ।

ପ୍ରଫେସର ହାଲଡେନ୍ ତାଙ୍କର ସମଗ୍ର ଜୀବନ ଜନକଲ୍ୟାଣରେ ବିତାଇଛନ୍ତି । ସେ ଜଣେ ସହଜ, ସରଳ ଓ ସମର୍ପିତ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ଅତ୍ୟନ୍ତ ସଚ୍ଚୋଟ ଏବଂ ସଦା ହସ ହସ ଥିଲେ । ଶେଷ ଜୀବନରେ ସେ କର୍କଟ ରୋଗରେ ପୀଡିତ ଥିଲେ । ମୃତ୍ୟୁ ପୂର୍ବରୁ ସେ ଘୋଷଣା କରି ଯାଇଥିଲେ ଯେ, ମୃତ୍ୟୁ ପରେ ତାଙ୍କର ମୃତ ଶରୀରକୁ ମେଡିକାଲ କଲେଜକୁ ହସ୍ତାନ୍ତର କରି ଦିଆଯିବ । ଯଦ୍ୱାରା ମୃତ୍ୟୁ ପରେ ବି ସେ ଜ୍ଞାନବିଜ୍ଞାନର କାମରେ ଲାଗି ପାରିବ ।

୧ ଡିସେମ୍ବର ୧୯୬୪ ମସିହାରେ ହାଲଡେନ୍‌ଙ୍କର ପରଲୋକ ଘଟିଲା । ଏଭଳି ଜଣେ ସମର୍ପିତ ଲଢୁଆ, ନିଷ୍ଠାବାନ ଏବଂ କଲ୍ୟାଣକାରୀ ବୈଜ୍ଞାନିକଙ୍କ ପ୍ରତି ଆମ ଦେଶ ଚିରକୃତଜ୍ଞ ରହିବ ।



